# ହାଲ ଫେସନ ।



ଗ୍ରନ୍ଥକର୍ତ୍ତ୍ରୀ

ଓ

ପ୍ରକାଶକ

ଶ୍ରୀ ଲକ୍ଷ୍ମୀ ।

ପ୍ରଥମ ସଂସ୍କରଣ ।

**Printed by V. Kar.**

THE UTKAL SAHITYA PRESS,

**CUTTACK.**

**1925.**

ମୂଲ୍ୟ ଠ ୦ ୵

# ଉତ୍ସର୍ଗପତ୍ରମିଦଂ ।



ପହିଲି ଧୂପ ।

ରକ୍ତଜବା ଜିଣି ସୁମଧୁର ରଙ୍ଗା,
ପୂତସଲିଲ ବଳ ସୁରଧୁନୀ ଗଙ୍ଗା;
ଚର ଚର ଢଳ ଢଳ ଲହରୀ ବିଭଙ୍ଗା,
ପ୍ରଣମେ ଚରଣେ ସୁରେ ! ବଡ଼ଲୋକ ଢଙ୍ଗା ।
ବଡ଼ଯତ୍ନଧାରଣି ଦୋରୂଚ୍ଛି ପିଣ୍ଡ,
କାଳୀକଗ୍ଳନ ତ୍ରିଭୁବନକନ୍ଦ,
ବଳଦନସ୍ତନ ଗୋ ! ଦ୍ୱାତ୍ରିଂଶ ହସ୍ତେ,
ଛତ୍ରଃ ରମ୍ଭୂଣି ଦେବ ନମସ୍ତେ ।

# ହାଲଫେଂସନ ।

## ସଞ୍ଜ ପହର ।

ଗୁଡ୍‌ମର୍ଣିଂ ଗୁଡ୍‌ମର୍ଣିଂ ଅନାଦ୍ୟ ଅନନ୍ତ,
ନମସ୍ତେ କଳାମୂରତି ବଡ଼ ବଡ଼ ଦାନ୍ତ ।
ନମସ୍ତେ ତୁମ୍ଭର ବୁଦ୍ଧି, ପ୍ରତିଭାନିଚୟ,
ଇଚ୍ଛା ମୋର, ପ୍ରଭୁ ତୁମ୍ଭେ, ଦେବ ପରିଚୟ ।
କେ ତୁମ୍ଭେ, କାହୁଁ ଅଖିଳ ଅଜ୍ଞାତ ସମସ୍ତ,
ଜନ୍ମ ତୁମ୍ଭ ଅଠେକଣା ଏଥୁଁ ଜାତି ଗୋତ୍ର ।
ଅଣ୍ଟୁ ଭୁଡ଼ା ତୁମ୍ଭେ ପ୍ରଭୁ ! ଦୁଇଟି ଧରଣୀ,
ଦାଣ୍ଡିନାଟେ ବୁଲୁଥାନ୍ତି ଲଜ୍ଜାନିବାରଣୀ ।
ବଜାମାଡ଼େ କାହାକୁ ତ ଦେଅ ନାହିଁ ବର,
ଝଣ୍ଡିଆ ମାଦଳ ମୂର୍ତ୍ତି ଦେଖି ଲାଗେ ଡର ।
ପୂର୍ବେ କେବେ ଥିଲ ପରା ଓଁକାର ସର୍ବସ୍ୱ,
ବଡ଼ି ଗର୍ବେ ଅଙ୍ଗ ତ୍ରୁଣ୍ଡି ହେଲଣି ଅବଶ ।
ନମସ୍ତେ ନମସ୍ତେ ତୁମ୍ଭେ ଦେବ ଚନ୍ଦ୍ରାମଣୋ,
ତନ୍ତ୍ର ବୁଝି ଦେବ ତୁମ୍ଭେ ଭାଣ୍ଡ ମଣେ ଖଣେ ।
ଅସମ୍ଭବ ତୁମ୍ଭ ଗୁଣ କେ ପାରିବ ବର୍ଣ୍ଣି,
ଶ୍ରେଷ୍ଠ ଜାଲ ଜଳନ୍ଧର ଅପୂର୍ବ ଧରଣୀ ।

ନୂଗୁଲ ତୁମ୍ଭ ଜୀବନ, ଚିତ୍ର ତୁମ୍ଭ ବୃତ୍ତ,
ଗୁମାସ୍ତାଗିରିରେ ତୁମ୍ଭ ସମ କେ ନାହାନ୍ତି ।
କୂଟ କରି କଲ ତୁମ୍ଭେ କୁରୁକୁଳ ଧ୍ୱଂସ,
ମାମୁଁ ମାମୁଁ ବୋଲି ଡାକି ମାରିଦେଲ କଂସ ।
ଗୋପୀଙ୍କ ସତୀତ୍ୱ ନେଲ ବଇଁଶୀ ବଜାଇ,
ସୁପତି ପ୍ରୀତିରେ ଦେଲ ମାଇଁଙ୍କୁ ମଜାଇ ।
ରୁକ୍ମିଣୀ ହୋଇଣ ତୁମ୍ଭେ କୃଷ୍ଣ ଚିତ୍ର ଖୋଜ,
ଆଶ୍ଚର୍ଯ୍ୟ ମଣେ ମୁଁ ଦେଖି ତୁମ୍ଭ ବାଲ ଓଜ ।
ଟେଣ୍ଟୁ ପ୍ରଭୁ ତୁମ୍ଭ ପଦେ ପ୍ରଥମେ ଓଲଗି,
ଧାଲ୍ ଫେସନ ଯେତେ ଚଳେ ଆଗ ପଛ ଲାଗି



ଝରୁଡି ବସାରେ ଭାଇ ଯାନ ବଡ଼ କସ ?
ଟଙ୍କା ଜନମ ଯାଇ ତାର ହାତେ ନଶ ।
କଏ କହେ କାମୁଡ଼ା ଟା ନୁହେ ତାଙ୍କ ଗୁଣ ?
ମନୁଷ୍ୟ ତ ନାହି ମାରେ ଖାଉ ଖାଉ ଲୁଣ ।
ନୁହନ୍ତି ସେ ଆମ ବାପ ଜମିଦାରୀ ପ୍ରଜା,
ଧରି ଆଣି ହୁଙ୍କା ପିଠା ଲଗାଇବୁ ସଜା ।



ପଞ୍ଚୁରିବି ଗୋଟେ ଜିଆ ଚଢ଼ି ନାହିଁ ଭାଇ,
ସନ୍ତୋଷ କି ହୁଅ ତୁମ୍ଭେ ଖାଲି ଅଣ୍ଟା ଖାଇ ?
ଅଣ୍ଟା ଘିଅ ପକା ମାଲ ଦେଲେ ଦଲାଦଳି,
ମଣ୍ଟ୍କନ ତଣ୍ଟିଜଳା ଖୋଜି ଯାଏ ଗଳି ।

ଖାଲି ଫୁଲ ରଙ୍ଗରେ କି ବାଲ୍ ଖୁସି ଅସେ ?
ଭଲ ଲାଗେ ସଙ୍ଗେ ଯେବେ ତା, ସେଣ୍ଟ୍ଟା ମିଶେ ।
ମିଶାମିଶି ଜନମକୁ ଦେବେ କାହିଁ ଛଡ଼ି ?
ଗନ୍ଧବାସେ, ଦେଖି କାହିଁ ମିଛେ ମୁହଁ ମୋଡ଼ି ?
ଦୋରସା ମାଟିରେ ଯେଉଁ ହୁଏ ସିନା ଭଲ,
ଦହି ଚୂଡ଼ା ନ ମିଳିଲେ କି ତୁଣ୍ଡ ବନ୍ଦେ ଲାଳ ?
ପାଣ୍ଡୁ ପୁଏ ଏହି ଭେଳେ ଜନମ ହୋଇଲେ,
ଖୀରଦ୍ଧ ପଣରେ ପୁଣି ଦେବଙ୍କୁ ମୋହିଲେ ।
ବଇରାଗୀ ବଇଷ୍ଣବ ଦେଖି କେ ଆଦର,
ନ କରୁ ତ କହ ଭାଇ, ଧର୍ମ ଭୟ ଯାର ?
ଜନମ ହୋଇବ ଭାଇ, ଯେମିତି ସେମିତି,
ବଇଷ୍ଣମ କୁଳେ ଯାଅ ସବୁ ଯିବ କଟି ।
ଫିରଙ୍ଗି ଦେଲାଣି ରେଲ ଗୃହଆଡ଼େ କରି,
ରେଲ ଚଢି ଦଣ୍ଡକରେ ଉଡ଼ିଯାଅ ପୁରୀ ।
ଡ଼ୋର କଉପୁନୀ ନାଅ, ବାନ୍ଧ ବେକେ ମାଳ,
ଟେକ୍ ଟେ ଟେକ୍ ଟେ ହାଙ୍କ ପେଟେ ଖେଚଡ଼ିର ଥାଳ ।
ମଠବାଡ଼ି, ଗୁରୁପନ୍ଥା ନାହିଁ ତ ଅଭାବ !
'ମାତା' ଗୋଟିକେତେ ଖୋଜ ଲଗା କୃଷ୍ଣଭାବ ।
ସୀତାରାମ, ସୀତାରାମ, ଫୁର୍ତ୍ତି ଫୁର୍ତ୍ତି ରାମ,
ଖଲାସ୍ କଷ୍ଟରୁ ଏବେ କର ନିତ୍ୟ କାମ ।
ଦେଶକୁ ଫେରିଲେ ଧରି 'ବଇରାଗୀ' ନାମ,
'ବାବା' 'ବାବା' ବୋଲି ଲୋକେ କରିବେ ପ୍ରଣାମ ।

ଭେଉର ମୂଲ ଥୋଡ଼ାକେତେ ତାଉଥିବ ବାକୀ,
ରୋଗ ଦେଖି ଜଡ଼ିବୁଟି ଔଷଧ ପାଇଁକି ।
ଏକା ପାଉଁସରେ ହେବ ସବୁ ରୋଗ ଧ୍ୱଂସ,
ଜର, ଝାଡ଼ା, ପେଟବଥା, ଗନୋରିୟା, କାଶ ।
ଆଉ ଡେରେ ବୋପା ନାମ କିଏ ବା ଖୋଜିବ,
ଥୋଡ଼ା ଦିନେ ପକାଘର ମହଲ ସାଜିବ ।
'ଅଣବାବୁ', 'ବାବୁ'ରେ ବା ବେଶୀ କି ଫରକ ?
ପଛ 'ଅଣ'ଟା କାଟି ଦେଲେ 'ବାବୁ' ହେଲ ଦେଖ !
ମଣିଷ ନ କହି ତାଙ୍କୁ ଗୋରୁ କି କହିବୁ ?
ବିଶ୍ୱାସ ନ ଗଲେ ଭାଇ ଦୌଡ଼ି ଆ ଦେଖିବୁ !
ଆମ ଏଠି ଯେତେ ସବୁ ଥିଲେ ଅଣ-ବାବୁ,
'ଅଣ' କାଟି ଲାଞ୍ଜକଟା 'ବୈଷମ' ବା 'ବାବୁ' ।



ବ୍ରାହ୍ମଣ ନନାଟି ଆମ ଧରମରକ୍ଷକ,
ଦେଶ ଲାଗି ପକେଇଲେଣି ଦାଢ଼ି ନଖ ଯାକ ।
ଦାଢ଼ି, ନଖ, ଦେଖି ହିନା ଡରୁଥିଲୁ ବାବୁ,
ଲମ୍ବା ଚୌଡ଼ା ଚନ୍ଦା ନାହିଁ ଚମକି ଉଠିବୁ !
ମାଖୁନ୍ନା ମୁହଁ କି ନୂଦ୍ୱେ ମାଦ ଭୁ ମଣିବୁ,
ଆଉ ତୋର ଡର କାହିଁକି ? ଗଲାଣିମ ସବୁ ।
ଖାଲି ନଖ ଢଙ୍ଗ୍ କରି ମାରି ଘିଅ ହାତ,
ନନା ଆମର ଠାକୁରଙ୍କୁ ମାରିଲେଣି ନାତ ।

ଆପଣଙ୍କର ନନା ଆଉ ଅଜାତ ଦେଖିଲେ
ଛାଡ଼ିବେ ବା କିଆଁ ? ଜଣେ ସେ ତ ଫ୍ରେଣ୍ଡ୍ ହେଲେ ।



ପତ୍ରିକାରେ ଏବେ ଦଳେ ନୋଟିସ୍ ଦେଖିଛି ଭାଇ,
ଭୁମ ରାଣ, ଭୁମ ମାଂଗ୍ଣ ଛି କନ୍ୟା ନାଇଁ ।
କାହାର ପଡ଼ିଛି ଜଣେ ପୁରୋହିତ ଲୋଡ଼ା,
କ୍ୱାଲିଫିକେଶନ ତାର ଥିବ ଖୁବ୍ ଥୋଡ଼ା ।
ଇଂରାଜୀରେ ତାଙ୍କ ଜ୍ଞାନ ଥିବ କିଛି ବାକୀ,
ଆଇ. ଏ. ପ୍ରିଫରେବଲ (ନୋଇଲେ) ନିତାନ୍ତ ମାଟ୍ରିକ୍ ।
ପାହ୍ଡ଼ା କାଣ୍ଡିଡ଼େଟ ଗୃହୀ ବୟସ ଅଠର,
ଇଂରାଜୀରେ ବାପାଙ୍କର ଶ୍ରାଦ୍ଧ ଦେବ ମୋର ।
'ଗୁଡ୍ ମର୍ଣିଂ' ନ କହିଲେ ବାପା ନ ବୁଝନ୍ତି,
ସ୍ୱର୍ଗ ଯିବ ସତ ତେବେ ବାପା ବା କାହାନ୍ତି ?
କାଲ ତ ଚଳୁଛି ଏବେ ଫିରଙ୍ଗୀ ଭାଷାରେ,
ନ ଆସନ୍ତି ଡାକିଲେ ସେ ଡେଡଲାଙ୍ଗୁଏଜରେ ।
ପୁରୋହିତଙ୍କର ପଛେ ବ୍ରାଣ୍ଡି ଠା ନ ଚଳୁ,
ଅନ୍ତତଃ ସେ ଜାଣିଥିବେ ମଦ କର 'ଚଳୁ' ।
ମନ୍ତ୍ର ସ୍ତୋତ୍ର ପଢିବେ ସେ ସବୁ ଇଙ୍ଗ୍ରାଜୀରେ,
ପିଣ୍ଡ ଦେବ ରୁଟି, ବିସ୍କୁଟ ଯଦ୍ଦାମ୍ ଭାଙ୍ଗରେ ।
ପେ ଆକଡ଼ିଙ୍ଗ୍ ଟୁ କ୍ୱାଲିଫିକେଶନ୍ ପୁରୋହିତଙ୍କର
ଆପ୍ଲାଇ ଟୁ ପୋଷ୍ଟ ବକ୍ସ ନମ୍ବର ସତର ।



ଶଙ୍କର୍ ନନା ! ପଲା ନାହିଁ କଥାଏ ଯା କହୁ,
ବହୁତ ଦିନୁ ସନ୍ଦେହଟେ ରହୁ ଯାଏ ଭାଇ !
ଧାତୁକୋଷ, ଶବ୍ଦକୋଷ ଯେତେ ଅଛି ହୋଇ,
ଦେଖିଲୁ ଦେଖିଲୁ ଛାର ପୁଡ଼ା ନେଉଠାଇ,
ଧାନକ୍ଷେତେ ଉଠେ ଗୁଡ଼େ ବାଲୁଙ୍ଗା ତ ଜାଣ,
ତାକୁ ବୁଣି କସ ଉଠେ କହିଲୁ ତା ନାମ ?



ଅଙ୍କାଶୀ-ମୂଳକେ ଜଣେ ହାଲ ସରଦାର,
ଅଳୁ, ମୂଳା, କଚୁ , ମକା କରି କେତେ ଭାର,
ତେଲ, କାଲ, ଦାଳ ଦେଖି ରାଜ ଦରଶନେ,
ଚପୁରୁଷଙ୍କୁ ପିଣ୍ଡି ଦେଇ ବାହାରଲ୍ଲା ଦିନେ ।
ଟାଁଯାକ ସଖା କରି ଅଭ୍ରେସ୍ଥାଏ ଦେଲେ,
ହାଲ୍ ପେଁଶନ୍ ଫାର୍ଶ ପରି ସର୍ଦାରଙ୍କୁ ଠେକଲେ ।
ଗଣ୍ଡି ଭଲ, ମୁଣ୍ଡ ଭଲ ତୁମ୍ଭେ ସରଦାର
ଚମ ପରି ନାହିଁ ନ ଥିବ ତନପୁର ଉତର ।
ଶଙ୍ଖ ଫୁଙ୍କି ସରଦାର ଶୁଭେ ବାହାରଲେ,
ଚଳୁ ଉଠି ଉଠି ରାଜ ସ୍ତମ୍ଭରେ ମିଳଲେ ।
ନାକଠାରୁ ମୁଣ୍ଡଯାଏ କହିଲେ ପ୍ରଣାମ,
ଗୋଡ଼ଠାରୁ ଚୁଟିଯାଏ କଲେ ଦରଶନ ।
ରଜାଙ୍କର ସବୁ ଭଲ (ଖାଲି) ବାମ ଶ୍ରୀପସ୍ତର,
ହାତେ ଉଚ୍ଚ ଟେଗାଦର ସେ ପାହାଡ଼ ଆକାର ।

ବୁଢା ହୋଇ ସରଦାରେ ଗ୍ରାମରେ ମିଳିଲେ,
ସଭା କରି ଗାଁ ଲୋକଙ୍କୁ ସକଳ କହିଲେ ।
ସମସ୍ତେ ତ ପଚାରିଲେ ରଜା କେଡ଼େ ବଡ଼,
ରୂପ ବର୍ଣ୍ଣି ଗଲେ ସର୍ଦାର ଆଖି, କାନ, ଥୋଡ଼ି ।
ହାସ୍ୟ, ହାସ୍ୟ, ଗୋଡ଼ କଥାଟି ପଡ଼ିଗଲା ମନେ,
ସନ୍ଦେହ ଅଛି ସରଦାରେ କହିଲେ ଚତୁର ଛନ୍ଦେ ।

କେହି ଆଉ କାରଣଟା କହି ନ ପାରିଲେ.
ଖୁଁ ଖୋସୁଆ ଚନ୍ଦ୍ରପଣ୍ଡିତେ ଏକାଳେ ମିଳିଲେ ।
ପଣ୍ଡିତଙ୍କୁ ଦେଖି ସଭା କଲେ ସତ୍କାର,
ହୋଲ୍ଡା ଦେଇ ବସାଇଲେ ଆସନ ଉପର ।
ପ୍ରଶ୍ନ କଲେ ସରଦାର ହେ ଚନ୍ଦ୍ରପଣ୍ଡିତ !
'ଦେଖି ଅଇଲି ମୁଁ ଏକ ମସ୍ତ ଅଚମ୍ବିତ ।
ରଜାର ତ ସବୁ ଠା'ନ୍ତି ଆମ ପରି ସମାନ,
ହାଁ ଗୋଡ଼ଟା ବଡ଼ କାହିଁକି କହ ତା କାରଣ ?
ଭାବି ଭାବି ଚନ୍ଦ୍ରପଣ୍ଡିତେ ତିନି ଘଣ୍ଟା ପର,
ହସି କହିଲେ 'ଶୁଣ, କାରଣ ମନେ ପଡ଼େ ମୋର ।
ଏ କଥାଟା ଜାଣ ନାଇଁ ରଜା ରାଜ୍ୟର ବଡ଼ ?
ସେଇଥିଲାଗି ମୋଟେଇ ଅଛେ ତାର ଆଉ ଗୋଡ଼
ନୋହିଲେ ତ ତୁମେ ମୁଁ ସମସ୍ତେ ସମାନ,
ସମାନ ସମାନ ଯେବେ ଥାନ୍ତା ନାକ କାନ ।
ବଡ଼ଲୋକ ଯେଣୁ ସବୁ ବଡ଼ ହେବା ଗୃହି,
କୋଠା ବାଡି ବଡ଼ ବଡ଼ ଦେଖିଲ କି ନାହିଁ ?

‘ଗୋଡ଼ ବଡ଼’ ଯେଉଁକି ତ ଶ୍ରୀଅଙ୍ଗର ଚିହ୍ନ,
ଗୋଟେ କିଛି ବଡ଼ ଥିବା ରଜାର ଲକ୍ଷଣ ।
ନୋହିଲେ ତ ଦଇବର ଭୁଲ୍ ହୋଇଥାନ୍ତା,
ରଜା ବଡ଼ଲୋକ ବୋଲି କେ କଥାଁ କହନ୍ତା ?
ତଥ୍ୟ ପାଇ ଏତେବେଳେ ଆନନ୍ଦ ସମସ୍ତେ,
ଧନ୍ୟ ହେ ତନ୍ତ୍ରପଣ୍ଡିତେ ! ନମସ୍ତେ, ନମସ୍ତେ ।



ହାଲି ଦରବାରେ ଯେବେ ମିଳନ୍ତି ସାହେବ,
ସଲାମୀ ସ୍ୱରୂପେ ତାଙ୍କ ‘ଡାଲି’ ବୁଝା ହେବ ।
ରାଜ ଦରଶନ ନୁହେ ‘ଭେଟୀ’ ନ ବାଛିଲେ,
ବଡ଼େ ବଡ଼େ ଏ ଭିଆଣ ସବୁ କରିଗଲେ ।
ପାଞ୍ଚ ଟଙ୍କାରେ ମୁଣ୍ଡ ବିକ କିରାଣୀ ବାପୁଡ଼ା,
ଖାଇବାକୁ ନ'ପରାଣୀ ହ'ନ୍ ଠଙ୍କେ ଲୋଡ଼ା ।
ଖାଉଛି ସେ ପ୍ରଜା ଠାରୁ କୋଶଲାରୁ କେତେ
‘ଘୁଷ୍’ ତେବେ ନ ହେବ ତା, କହ କି ପ୍ରକାରେ !
‘ଡ଼ାଲି’, ‘ଭେଟ’, ‘ଅଣ୍ଟାଗୁଞ୍ଜା’ ଏକ ତ ଜିନିଷ,
‘ଘୁଷ୍’ ବୋଲି କୌଠି ତେବେ ଫରକ ବେଶୀ କିସ ?
ପାପଦ୍ରବ୍ୟ ବେଶୀ ହେଲେ ପୁଣ୍ୟ ନାମ ଧରେ,
ଉଠିଯାଅ ଯେତେ ପାପୀ ସ୍ୱର୍ଗ ପାହାଚରେ ।
ମଦ ଢ଼ାଳି ତାଳି ଦିଥିଲେ ରଜା ଦେଲେ ତାଳି,
‘ଗଲ୍ଲ’ କଲା ଗୃହର ଯେବେ ସେ ଖାଲା ‘ମାତାଲ୍’ ।

ରଜାଙ୍କ ହସ୍ତରେ ଦୋଷୀ କରନ୍ତି ଖାଲି;
'ଗରବ ମାଇପ ସିନା ଦୁନିଆର ଶାଳୀ ।'



ଶିଷ୍ୟ ପଚାରନ୍ତି 'ଗୁରୁ ! ଶଳା କାହାକୁ କହନ୍ତି' ?
ଗୁରୁ ବୋଲେ ଏଥର କଥାଟା ତୁ କି ଜାଣୁନାହିଁ !
ଧର୍ମଶାସ୍ତ୍ର କହେ ଶଳା 'ଘରଣୀର ଭାଇ'
ପୁଅଟାର ମାମୁଁଙ୍କୁ ବି ଶଳା ବୋଲି କହ ।
ଆପଣାର ଯେଉଁ ଶଳା ତାକୁ କହ ଶଳା,
ଶିଷ୍ୟ କହେ 'ଏ ସବୁ ତ ପୂର୍ବକଥା ଗଳ୍ପ ।'
ଏ ଯୁଗରେ ହାଲ୍ ଫେସନ ଶଳା କଏ କଏ ?
ଗୁରୁ ବୋଲେ 'ଭାଇଠୁଁ ବଳି ସ୍ନେହ ପାଏ ଯିଏ ।

ଆଗେ ଶିଷ୍ୟେ ହେଉଥିଲେ ଗୁରୁଙ୍କ ନନ୍ଦନ,
ଆଜି କାଲିକା ସମ୍ପର୍କଟା ହୋଇଛନ୍ତି ନୂତନ ।
ମିଛ ନୁହେଁ, ଆମ ଏଠି କେତେଠେଇଁ ଚଳେ,
ଶିଷ୍ୟ ତୁ ତ ତୋତେ ସତ ନ କହି ନ ଚଳେ ।
ଗୁରୁ ପାଶେ କେହି ଯେବେ ଶିଷ୍ୟ ପଣ କଲା,
ନିଜ ପୁଅ ହେଲେ ବି ସେ ଗୁରୁଙ୍କର ଶଳା ।

ବଡ଼ ପାଠୁଆ ପାଇଲେ ସହର ଗୃହର,
ଶାନ୍ତି ରକ୍ଷି ଶଳା ନାମ କହିଲେ ଉଚ୍ଚାର ।
ମଥାପାଗ ସନ୍ତୁକର ଗୁଣ ଅଛି ଯେତେ,
ଗୋଷ୍ଠି ଗୋଟି କର ଆଉ ବଢେଇବ କେତେ ?

ରାଜ୍ୟପାଳ ତାଙ୍କ ଶଳା ସେ ନୁହେଁ କାହାର,
ତାଙ୍କର ଭଗିନୀ ହେଲେ ସେ ଉହେ ତାଙ୍କର ।
ଧର୍ମ ଅବତାର କେତେ ଦୁନିଆଁ ହାକିମ,
'ଶାଲକ-ବାତ୍ସଲ୍ୟ' ପ୍ରଜା ପାଳନ୍ତି ଉତ୍ତମ ।
ଅଜାଠାରୁ ନାତିଯାଏ ଶଳା ତ ତାଙ୍କର,
ପ୍ରଜା ନୃଶଙ୍କୁ ଶ୍ରିଠାରୁ କୋଶଳା କଅର ।

ବହାଦର ସର୍ଦ୍ଦାରର ନାତି ହୁଏ ଶଳା,
କହିଲୁ ଦେଖି ସେ ସର୍ଦ୍ଦାର କ ଜାତିରେ ଗଲା ?
ଗୁଣଧର ଶିଷ୍ୟ କହେ "ବୁଝିଲି ଏଥର,
ଏ ସର୍ଦ୍ଦାରଙ୍କ ବାପ ଅଜା ମାଙ୍କଡ଼ କୁକୁର !"
ଦୂର୍ ମୂର୍ଖ ବୋଲି ଗୁରୁ ମାରିଲେ ଚାପଡ଼େ,
"ବଡ଼ଲୋକ ସେ ଏ କଥା କହୁ ତୋର ସାହସ କେତେ !"



ବଡ଼ିଆ ଓସ୍ତାଦ ମୁଁ ହୋ, ହେଲିଣି ଏଥର,
ଆଥି ଇଲ୍ ହାଦ ଲବଜ୍ କଲିଣି ହାସଲ୍ ।
ଭୁମ୍ ତେର, ନାନା ତେରେ, ଧ୍ରୁମ୍ ଧ୍ରୁମ୍ ତାନା,
ସାମା ଗାଧା ଶିଖିଲିଣି ଢେରେ ତାନା ନାନା ।

ଲାଲ୍ ଲିଲ୍, ଠୋଠା ଠିଠି, ତାନମିଚିକର,
ଦ୍ରା'ଦେଦାଗ୍, ଦାଦ୍ରେଦାଗ୍, ଆଦ ଦଗଦଗ ।
ସେହକ ଯେ ହନ୍ଦୁସ୍ଥାନୀ ଓସ୍ତାଦ ଦେଖିଚ ନା ?
କିଛି ନୁହେ, କିଛି ନୁହେ (ଖାଲି) ଠେପ୍ପାଠୁମୁର ଜଣା ।

ତିନି ବରଷ ସା, ରେ, ଗା, ମା, ଗଲସଧା ଭାଇ !
ଗେଲ ପଢ଼ୁଛୁ ? ଏତେ କଷ୍ଟ, ଆୟୁଷ ଥିବା ଗୃହ ।
ତା ପଛରେ ଗୀତ ଶିଖା, ପୁଣି କେମିତ ଓସ୍ତାଦ,
କାର ସାଗେର୍ଦ୍ଦ ମୁଁ ମୋ ସାଙ୍ଗରେ ବାଦ ?
ପତଲା ଗଲା, ନରମ ଅବାଜ, ବାଇମାନଙ୍କୁ ସାଜେ,
ମରଦବଚ୍ଚ 'ଗଧଗଲା' ନୋହିଲେ ସେଟା ବାଜେ ।
ଚାପି ଚାପି ଗଲା ଗାଅ ଦାନ୍ତ ଗୋଟାକେତେ,
ଖିଆଲ୍ ଟପା ଗ୍ରୁପଦଅ "ନାମ ବାଢ଼୍ବେ ତାତେ ।"
'ବିଲମ୍ପତ୍' ଥୋଡ଼ା ବଦ୍ଦତ୍ ଶିଖିବ ଏଥର,
ଗୁରୁଦେବଙ୍କୁ ଚଢା ଦେବ ପନ୍ଦର ସତର ।
ଶ' ଦ' ବୋଲ ଜାଣିଥିବ ଯେ, ଯେ ବାଜୟ୍ତା ଦେଲେ,
କେଜାଣି ବା ମୋ ସାଙ୍ଗରେ ଠେକା ଦବ ଦେଲେ ।
କୋପକେ ଗୋଟେ, ପାଅକେ ଗୋଟେ ପଡ଼ୁଥିବ ତାଳ,
ଗୋଠାଏ ଘା ଦେଇ ବାଜୟ୍ତା ଉଣ୍ଡୁଥିବ ଗୃଲ ।
ଘଣ୍ଟେ ପରେ ଆହୁର ଘାଏ ମାର୍ବ ଜଠାଇ,
ସାବାସ୍ ରେ ବଢ଼ିଆ ଓସ୍ତାଦ ସାବାସ୍ ରେ ଭାଇ !
ଆଉ ଗୋଟେ କଥା ଭାଇ ! ଓସ୍ତାଦ କାଏଦା—
ଗୋଟାକେତେ ଘୋଷୁଥିବା ଦର୍କାର ସର୍ବଦା ।
ଫାଲେ ଥୋଡ଼ା ଠେକା, ପୁଣି ଅଧଆଖିଠର୍‌,
ଖେଁ, ଖେଁ, ଖାସ, ଶିରକମ୍ପ, ଚାଣ୍ଡୁଦୂନଧାର୍‌ ।
ଆପଣାର ଭୁଲ୍ ମୁଖେ ସ୍ୱୀକାର ନ କରବ,
ଭୁଲ୍ ଗାଇଲେ (ନୂଆ) ଏକ ରାଗିଣୀ କହିବ ।

ଶିଷ୍ୟ ବୋଲେ "ନୂଆ ରାଗ ଆସିବ କେଉଁଠୁ ?"
"ଅରେ ଉଲୁ ! ଶୁଣ୍ ଯେବେ ଶୁଣିଛୁ ଗୁରୁଠୁ ।
(ଦିନେ) ଭୁପାଳୀରେ 'ମ' ଲଗାଇ ଗାଇଲେ ଗୁରୁବର,
ପଚାରିଲେ ସେ ଚଠ୍ କହିଲେ ଏ ରାଗ 'ଲଙ୍କେଶ୍ୱର !'
ସେମିତି ଚଟକା ବୁଦ୍ଧି ଥିବା ତୋ ଦର୍କାର,
ହିନ୍ଦି ଗୀତ ଗୋଷ୍ଠାକେତେ ଶିଖିନା ଏଥର ।
ବାକ୍ୟ ଆଡ଼ମ୍ବର ଛନ୍ଦ ଅଭ୍ୟାସ କରିବୁ,
ପଣେ ଗାଇସ୍ତା ହିନ୍ଦିଇଙ୍କୁ ବୋଲି ତୁ କହିବୁ ।
କାଲୁମିଆଁ, ସୋଲୁମିଆଁ, ବୋକା ଉଲ୍ଲାଖାନ୍,
ପ୍ୟାଟେଲଖାନ୍, ଛେଲାଖାନ୍, ଗୁଡ଼୍‌ଚନ ଖାନ୍ ।
ଗୋଷ୍ଠାକେତେ ନା ତୋର ମୁହେଁ ମୁହେଁ ଥିବ,
ମନେ ରଖ ! ଏଇଟା ତୋର ବଡ଼ କାମ ଦବ ।
'ଓଡ଼ିଆ' ବୋଲି ଗୋଟେ ଭାଷା ଅଛି ଓଡ଼ିଶାରେ,
ଖବରଦାର୍ ସେ ଗୀତ ତୁ ନ ଶିଖ ମୁଁହରେ ।
ଯାରୁ ଯେବେ ଥିବୁ ଦୂରେ ନ ଶୁଣିବୁ କାନେ,
ସେଗୁଡ଼ାକ ଠିକ୍ କେବେ ନୁହେଁ ତାଳେ ମାନେ ।
"ଶିଷ୍ୟ ବୋଲେ ଗୁରୁ ! କଁପା ଚଳା ବହି ଥାସେ ?"
"ଗୁରୁ ବୋଲେ ଓସ୍ତାଦ୍ ହବା ପୂର୍ବ ଲକ୍ଷଣ ସେ ।"
ଶିଷ୍ୟ ବୋଲେ 'ଅମୁକ ଗାଏ ବଡ଼ ପାଗଲା ଗଳା,
ଶୁଣିଲି ସେଦିନ ଗୁରୁ ! ମଧୁର ଲାଗିଲା ।
ଆସର ଭିତରେ ନାମ ଉଠିଲା ତାଙ୍କର,
ସାବାସ୍ ବାହାବା ଖାଲି ଶୁଣେ ବାରବାର ।

ବଡ଼ ମିଠା ଗଳା ସତେ ଗୁରୁଦେବ ! ତାର,
କଳକଣ୍ଠ ପିକ ଗୀତ ତା ପାଖରେ ଛାର ।'
ଗୁରୁ ବୋଲେ ଶୁଣ ମୋଠୁଁ ଶୁଣ୍ ଆରେ ଚେଲୁ,
ଗଳା ମିଠା ନ ହେଲେ କି ଓସ୍ତାଦ୍ ନୋହିଲୁ ।
କାନକୁ ଭଲ ଲାଗୁ ନ ଲାଗୁ ସେଥିରୁ କି ଯାଅ,
ରାଗ ଚର୍ଚ୍ଚା ଗୋଟାକେତେ ବହିକରି ଯାଅ ।
ଗଧ, ଘୋଡ଼ା, ଛେଳି, ମେଣ୍ଢା, ଯେ'ବା ଗଳା ସାଧ,
ରାଗ ରାଗିଣୀ ଗୋଟାକେତେ ଶିଖିଲେ ଓସ୍ତାଦ ।
'ଶିଷ୍ୟ ବୋଲେ ତେବେ ଗୁରୁ ! ମୋଠରେ ଓସ୍ତାଦ କିଏ,
'ଫଟା ଗଳା ହଉ ଥିଲେ ବଡ଼ପାଟିଆ ଯିଏ ।'
ଗମ୍ଭୀର ଚେହେରା ଦାଢ଼ି ଥିବା ବି ଦର୍କାର,
ବେଳେ ବେଳେ ଆଖି ମୁଦି ହେବ ଭାବେ ଭୋର ।
'ହଜୁର ମାଲିକ, ହଜୁର ଆଲ୍ଲା, ହଜୁର ଖୋଦା', ବୋଦା,
କି ଆଜ୍ଞା ଯୋ ଖୁସି ଥା' ଥିବ ଗଳାରେ ସଧା ।
ତେବେ ବାବୁ ଓସ୍ତାଦ ହବୁ ଫାଲ୍‌ତୁ ନଣ,
ଅଥା ନୁହେ, ବଡ଼ କଷ୍ଟ ବିନାଭ୍ୟାସେ ବଣ ।



ମସ୍ତ ଏକ ହୁଣ୍ଡା ମୁଁ ହୋ ମଣ ନାହିଁ ଥଟା,
ଉନ ଉଲଟା ମିଶାଇଲେ କହେ ମୁଁ ଛଥଠା ।
ଘରଟାକୁ ଘର କହେ ଗୋରୁଟାକୁ ଗୋରୁ,
ମୋ ଆଖିରେ ଗୁହ୍ନି କହେ ସାରୁଟାକୁ ସାରୁ ।

ରଜାଙ୍କ ଲାଗି ଏକାଦଶୀ ପୁଅ ବ୍ରାହ୍ମଣ କରେ,
ସେତେ ବଡ଼ ଭାଗ୍ୟ ବାକୀ ନାହିଁ ମୋ କର୍ମରେ ।
ଜାଣି ଶୁଣି 'ଗଛ'ଟାକୁ 'ଗଧ' ନ କହିବ,
ବଡ଼ଘର ଗୃକରସ୍ଥା ନୋହିଲେ ନୋହିବ ।



ଡାକତରଖୀ ବୈଦ୍ୟସାଠା ଏଥର କରବ,
ଲାଇସେନ୍ସ ନେଇ କାମ କରୁଛୁ, କାହିଁକି ଡରବା ?
ପେଟେଣ୍ଟ ମଲେ ମରୁ ମୋର ଦରମା କଠୁ ନାଇଁ,
ବଡ଼ ହାକମ ଦୋସ୍ତ ମୋର, କେସ୍ହାର କାହିଁପାଇଁ ?
ପେଟେଣ୍ଟ ଏକ ମେଡ଼ିସିନ କରଚ ବାହାର,
ଏକା ଔଷଧରେ ମିଳେ ସବୁ ଉପକାର ।
ପୁଅ ହବ ଝିଅ ହବ ଗୃକରୀ ମିଳବ
ମୁଣ୍ଡରେ ଚଢା ଘେନଲେ ରଜା ବଶ ହେବ ।
ଶତ୍ରୁ ନାମେ ପାଇ ଦେଲେ ଶତ୍ରୁ ହେବ ନାଶ,
ପରୀକ୍ଷା ପ୍ରାର୍ଥନା କରେଁ, ଅସଲ ବିଶ୍ୱାସ ।
ଫଳ ଯେବେ ନ ପାଇବ ଦାମ ଦେବୁ ଫେର,
ଚଠକା ଅଡ଼ର ଦଅ, ପଛେ ହେବ ଘାର ।



ବେକେ ବଡ଼ ଢେଗାମାଳ, ନାକେ ରସକଲି,
ଝୁଲି ମୁଣି, ସରୁଛଲକ, ହଶ, ନେଳ, ନାଳି ।
ମାଳ ଜପି ଭାବୁଥିବ ସୁଧକଷା କାମ,
ଛଦାମେ ହୁଡଲେ ମୁଖେ ରାମ୍ ରାମ୍ ନାମ ।

ପନ୍ଦରଶା ଘର ମିଶିଗଲେ ଲମ୍ବ ଘର ହବ,
ଅଣ୍ଟୁକୁଡ଼ା ଦାସବୁଢ଼ାକୁ ଯମ କେବେ ନବ ?
ଭିଖାରି ନ ଗଲେ ଦ୍ୱାରୀକୁ କେବେ ନ ଖାଇବ,
ନିତାନ୍ତ ଅସହ୍ୟ ହେଲେ 'ଠେଙ୍ଗାଧାରୀ' ହେବ ।
ମିଠାକଥା କହୁ ସବୁବେଳେ 'ବାବା' 'ବାବା,'
'ହେ' ଯାଗାରେ 'ନେ' ବସାଇ ପାଖରେ ଦେବ 'ବା' ।
ଜୀବନଟି ରଖିଥିବ ଧାନବନ୍ଧୁ କ୍ଷମା,
ଯା' ନାହିଁ ଜାଣ ଭାଇ ! "ଗୌରାଙ୍ଗ ମହିମା ।"



ହେ ! ହେ ! ବଡ଼ ଚାଟକା କଥା ଦେଖିଲ ରେ ଭାଇ !
ହାଣ୍ଡିଟାଏ ବୁଲୁଥିଲା ବଣ ଶୁଙ୍ଘି ଯାଇ ।
କୁଞ୍ଚା ଏକ କହେ ବନେ ହାଣ୍ଡିର ଦୁର୍ଗୁଣ,
ବଢ଼ିଥିଲା ହାଣ୍ଡିଘରେ ଖାଇ ତା'ର ନୁଣ ।
ହାଣ୍ଡି ଆସି ପହୁଞ୍ଚିବା ବେଳ ଯେବେ ହେଲା,
ପହିଲ ପ୍ରଥମେ କୁଞ୍ଚାକୁ ସଲାମ୍ ଠୁକିଲା ।
କହେ କୁଞ୍ଚା କାନ୍ଦି କାନ୍ଦି ବାହୁନି ବାହୁନି,
'ଏତେ ଦିନ କାହିଁଥିଲ ? ହେ କଶାନ୍ତମଣି !
ତୁମ୍ଭ ବହୁନରେ ଅଧେ ଗଲଣି ମୁଁ ଝଡ଼ି,
ଆଜ ଓଲକରେ ଦେହ ପଡ଼ିଥାନ୍ତା ଠେଲି ।
ଶତ୍ରୁ ହୋଇ କେତେ ତୁମ୍ଭ ଦୁର୍ଗୁଣ କହନ୍ତି;
କି କହିବ ତୁମ୍ଭେ ନ ଥିଲ, ମୁଁ କି ତା' ସହନ୍ତି ?'

ତୁମ୍ଭ ଖାଇ ହାତୀ ତାକୁ ସମାଦର କଲ,
ସ୍ଥାଠୁ ବଳ ତାଠକା କଥା, କେ ଦେଖିଛ ଭଲ ?



ସାତପୁରୁଷି ଖଣ୍ଡ ଏକ ସଦଜ୍ଞାନ ପାଇଁ,
ପୁଅକୁ ତା'ର ଛାଡ଼ିଦେଲା ମାମୁଁ ଘରେ ଯାଇ ।
ଘରେ ଥିଲେ ବାପଠାରୁ ଦୁର୍ଗୁଣ ଶିଖିବ,
ପିଲାଦିନୁ ତେଣେ ଥିଲେ ମନ୍ଦଙ୍କ ବାହିବ ।
ଯାଉ ନ ଫେରୁଣୁ ପୁଅ ଗଲା ମାମୁଁ ଘର,
ବାର ବରଷରେ ବାପ ଭେଟିଲା ତାହାର ।
ଆସିଲା ଘରକୁ ପୁଅ, ଅତି ଆଦରରେ—
ପଥେ ପିଢା ଭିବେ ବସି ଦେଖିବ ମୁଁ ଥରେ ।
ମୋ ପୁଅଟି ମୋ ପରି ତ ନୁହେ ଅଣ୍ଡ ଖଣ୍ଡ,
ପାଖ ମିଳେ ବାପ କହେ "ପ୍ରଳୟ ନିକଟ ।
ଦେଖିଲୁଣି ରେ ଗିର ! ଆସେ ହେଉଛି ନଇ ମାଡ଼ି,
କାହିଁ ପଳେଇବା କହ ଜୀବ ଯାଏ ଛାଡ଼ି ।"
ପୁଅ କହେ "ହଁ ଗୋ ବାପା, ଶୁଣେ ଗରଜନ,
ଦେଖୁନାହିଁ ପିଣ୍ଡରେ ମୋର ଲାଗିଛି କେତେ ଫେଣ ।"
କାଉଳୁଆ ଶୁଆ ହେଲେ ପୁଥି କି ରହିବ ?
ଚଉଦ ପୁରୁଷ ଗଲେ ଗୋତ୍ର ସୁମରିବ ।



ଖୁସାମଦ ଠା ଦୋଷାବହ କୋଉ ମର୍ଜି କହେ ?
ଏହା ଶୁଣି ବସୁନ୍ଧରା କେମନ୍ତ ସହେ ସହେ ?

ପୂର୍ବରୁ ଯେ ତନ୍ତ୍ର ମନ୍ତ୍ର ରହିଅଛି ଜାଗି,
ସେ ସବୁ ତ ଦେବତାଙ୍କୁ ଖୁସାମତ ଲାଗି ।
ବଡ଼ରୁ ତ ଯାନଯାଏ କର ଖୁସାମତ,
(ତେବେ) ନନାଙ୍କର କି ମୁହଁରେ କାଠମୁହଁ ନୁହଁ ତ ?



ବୁଦ୍ଧି ବଢ଼ିବାର ଭାଇ କହିବ ଇଲମ,
ଘରେ ବସି ବଢ଼ିଯିବ କର ଗୋଟେ କାମ ।
ଶିବପୂଜା ନାମ କରି ଘୋଟି ପିଅ ଭାଙ୍ଗ,
ଅଖିଯାକ ଦିନରାତି କରିଦିଅ ରଙ୍ଗ ।
ସିଦ୍ଧ ହେବ ଦେବ କାର୍ଯ୍ୟ, ଦୁର୍ନାମ ଶିବର,
ପ୍ରସାଦ ତ ନ ପାଇଲେ ହାନି ଧରମର ।
କାଳୀ ପୂଜା କର, ପିଅ ମା'ଙ୍କ ପ୍ରସାଦ,
ଅର୍ଥାତ୍ ସିଧା କଥାରେ ସେବାକର ମଦ ।

ଖୁବ୍ ହବ ବୁଦ୍ଧିବଳ ଆୟୁଷ ବଢ଼ିବ,
ମଦଖିଆ ଦୁର୍ନାମଟା କାଳୀ ନାମେ ଯିବ ।
ଯୋଡ଼ା ଗଞ୍ଜେଇର ଗୁଣ ! ଅପାର ମହିମା,
ଛୁଇଁ ନ ପାରିବ ତାଙ୍କୁ କଳିକାଳ ସୀମା ।
ତ୍ରିନାଥମେଳା ତ ଏବେ ଘରେ ଘରେ ପୂଜା,
ଗଞ୍ଜା ଉଡ଼ି ଲାଗ ଆଖିରେ ବନିଯାଅ ରଜା ।
ଗଞ୍ଜାର ଦୁର୍ନାମୁଁ ପାର ତ୍ରିନାଥ ନାମରେ,
ହରେକୃଷ୍ଣ, ହରେକୃଷ୍ଣ, ହରେରାମ, ହରେ ।

ବାଙ୍କ ରହିଗଲା ଭାଇ ! ଅଫିମାଙ୍କ ଦଶା,
ସେ କି ଦୋଷେ ଦୋଷୀ ? ତାଙ୍କ ନ ପୂରିଲା ଆଶା ।
କେହି ଦେଲେ ଦେବତା ବି ସପନାଉଁ ନାହିଁ,
କାହା ପୂଜା କଲେ ତାଙ୍କ ଦୁର୍ନାମଟା ଯାଇ—
ଗୁଲା ଅଫିମର ସତେ ମହିମା ବଢ଼ନ୍ତା,
ଅଫିମାଙ୍କ ଘରେ ଘରେ ହରିବୋଲ ପଡ଼ନ୍ତା ।



ସିଭିଲାଇଜ୍ଡ ଦୁନିଆଁରେ କେମିତି ହେବ ଜାଣ ?
"ଦେଶପାଇଁ କମର କଷି କର ମୁହେଁ ଠାଣ ।
ଆଟ୍‌ଲିଷ୍ଟ୍ ପାସ୍ କରି ଘୋଷି ଘୋଷି ବି. ଏ.
ଡିଗ୍ରୀଧାରୀ, ମୂର୍ଖ ବୋଲି କହେ ଆଉ କିଏ ?
ଦେଶହିତ ଲାଗି ଖାଅ, ଦେଶ ଲାଗି ଶୁଅ,
ଦେଶ ଲାଗି ଜନ୍ମ କରି ଗଣ୍ଡା ଗୋଟି ପୁଅ ।

ଲେଡି ସ୍ୱାଧୀନତା ଦିଅ ଲେଡ଼ି ସ୍ୱାଧୀନତା,
ନୋହିଲେ ତୁଟିବ କାହିଁ ତୁମର ହୀନତା ।
ଛନ ମହଣି ତୁଲାରେ କରି ଗୋଟା ଗଦି,
ଦୁଇ ଗଣ୍ଡା ଲମ୍ବ ଗୋଲ ତକିଆ ଦିଅ ଲଦି ।
ପଢ଼ି, ଗଡ଼ି, ଗୁଳି, ଚରସ୍ ଦିଅ ଭଲ ଭଳି,
ସ୍ୱଦେହେ ବୈକୁଣ୍ଠ ଯିବ, ଲାଗିଯିବ ଶିଡ଼ି ।
ଝୁଲି ଝୁଲି ଭାବୁଥାଅ ଦେଶହିତ କଥା,
ଅଥବା ଗୁଡ଼ାଖୁ ଖାଅ ତାଜା ହେବ ମଥା ।

କାଲେ ଅବା ବୁଦ୍ଧି ଯଦ ଫଡ଼ୁଯିବ କମ୍,
ସଙ୍ଗେ ସଙ୍ଗେ ବୁଦ୍ଧି ମୂଳେ ଦଅ ଗଞ୍ଜା ଦମ୍ ।
ସବୁ ଦେଶହିତ ଲାଗି, କେହି ନୁହ ବାଦ,
ଦେଶ ଲାଗି ହସ, କାଶ, ଦେଶ ଲାଗି କାନ୍ଦ ।

ସ୍ତ୍ରୀଏ ଏଥର ଏକ ସଭା ଦେବେ କର,
ଭୋଟ ଦେଇଛନ୍ତି ସ୍ତ୍ରୀଏ ଲକ୍ଷ ଦୁଇ ଶହ ।
ଧର୍ମେ ସେ ବଭା ନୋହିବେ କେବେ କାହାରିକ,
ପାସ୍ ନ କରିଲେ ଜ୍ୱାଇଁ ବି. ଏ. ସରିକ ।
ବୁଢ଼ା ହନଯାଏ ଯେବେ ବର ନ ମିଳିବ,
ମନ୍ଦ କସ ? 'କୁମାରୀ' ଏ ଚାଇଣ୍ଟିଟା ତ ଥିବ ।
ହରି ବୋଲ, ମାର ତାଳି ସଭା ମଜ୍ଜିଲା,
ପାଞ୍ଚହାତ ଉପରକୁ ଦେଶ ଉଠିଗଲା ।



ହିନ୍ଦୁ ହୋଇ ଠାକୁର-ଭୋଗ ନନ୍ଦା ନ କରିବ,
ପୋକ ମାଛି ହୋଇ ସିନା ଜୀଅନ୍ତା ମରିବ ।
ଆମର ଠାକୁର ସବୁ କାଠ ବା ପଥର,
ନନ୍ଦା ବସ୍ତୁ ମୂର୍ତ୍ତି ତଲେ ଫିମ୍ପା ନାହିଁ ତାର ।
ଅମୂଣିପ୍ୟାରେ ପଡ଼ିଥିବ ଯେବେ ମଲା ମାଛି,
ତଲେ ଘୃଣା ନ କରିବ ଭୋଗ କରିବ ବାଛି ।
ମନସ ଯା' ନ ଖାଇବ ଦେବତା ଜରେ ପାଇ,
ସେଥିଲାଗି ଆମ ଠାକୁର ନାମଟା "ଉଦାର" ।

ସ୍ୱାଗଭୋଗ ମିହିଧାନ ନାଲିଆ ଚାଉଳ,
ବଡ଼ ଶ୍ରଦ୍ଧା ଠାକୁରଙ୍କର ବଢ଼େ ଭଜନବେଳ ।
ଦେଶୀ ଗୁଅଘିଅର ଏବେ ବାସନା ଜମା ନାହିଁ,
ଟୀନ କଣ୍ଟା ଭର୍ତ୍ତି ଆସେ ଦୂର ଦେଶୁ ବହି ।
ଖଞ୍ଜାବାଡ଼ୀ ସୀମା ନାହିଁ ଠାକୁର ଉପାସ,
କାରପରଦାର ବି ଖାଏ ନାହିଁ ଛଏଁ ଛଏଁ ନିକାଶ ।
ଠାକୁରଙ୍କୁ ଯେ ପଟ୍ଟ ମାରେ ତା'ର ବଢ଼େ ଘର,
ଠାକୁରଙ୍କ ନାମ ତେଣୁ 'କରୁଣାସାଗର' ।
ଲେଖାଅଛି ଦେଖିଛ ନା ଗାୟତ୍ରୀ—ବେଦରେ ?
"ସନ୍ତୁଷ୍ଟ ହେବ ନିତ ସ୍ତୁତି ଦ'ପଦରେ" ।
ଖେଚଡ଼ିରେ ମିଶିଥିବ ଲମ୍ବାଲ—ଭୋଗ,
ମିଠା ବେଶି ଦେଲେ ଠାକୁରଙ୍କୁ ହେବ ରୋଗ ।
ଆମଠାକୁର ବଡ଼ ପେଟୁଆ ବଡ଼ ଟାଣ ଦାନ୍ତ,
ମସଲା ବୋଲି ଗ୍ରେବେଇବେ ଗୋଡ଼ ପର୍ଯ୍ୟନ୍ତ ।
ଦେଉଳେ ବି ବାଜିଲାଣି ହାଲ୍ ଫେସନ୍ ଗ୍ରେଟ୍,
ଠା'ପରେ ଖୋଜା ହେବ ବିଡ଼ି, ସିଗାରେଟ ।
ମାହାସିଙ୍କ ଘରପଶା ଅଧୁଆ କପଡ଼ା—
ନ ଛିଙ୍କି ଭୋଗ ବାଢ଼ିଲେ ଠାକୁର ହେବେ କଡ଼ା ।
ଜୟ ଜୟ ଦୀନବନ୍ଧୁ ଅପାର ମହିମା,
ତମକୁ ବି ଛୁଇଁଲାଣି କଳକାଳ ସୀମା ?
ବାକି କହିଁ ଥିବ ପ୍ରଭୁ ! ଖାନା, ବ'ଲନାଟ ?
ପଥର ଦେଉଳେ ରହି ପଥର ପାଲଟି ।



ପଢ଼ାବେଳେ ନାଉ ନିନ୍ଦା କରେ ଶିକ୍ଷକ,
ଧିକ ତାଙ୍କ ଜନମଟା, ଧିକ କର୍ମୀକ ।
'ମୋଷ୍ଟ ଓବିଡ଼େଣ୍ଟ' କେତେ ଲେଖିବ ଦିନରେ !
କେତେ ଥପଡ଼ ଖାଇଦେଲେ ନ ଆସେ ମନରେ ।
ସ୍ୱାଧୀନ ବେଉସା କିଛି କରିଲେ କରିବ,
ନିତାନ୍ତ ପକ୍ଷରେ ଜଣେ 'କ୍ରିଟିସାଇଜର୍' ହେବ !
ସଭାରେ କହିବ ଧାଡ଼ି ଦୁଇ ଚାରି ପଦ,
ବରଷିବ ତାଳି ମାଡ଼ "ଧନ୍ୟରେ ସମ୍ପଦ" ।
ଏବେ ହେଲି ଧନହୀନ, ଦୁଃଖେ ଅଳସୁଆ,
ଉଠିଲା ବେଳକୁ ଲାଗେ ସଞ୍ଜଧୂପ ଧୂଆଁ ।
ପେଟ ତ ପୂରିଲା ନାହିଁ ଏଡ଼େ ମାନ କର,
ଗୁଣ୍ଡା ତ କେ ପାନ୍ଥ ଜଳାରେ ଦେଲା ନାହିଁ ଭର ।
ଖଞ୍ଜେ, ଖଞ୍ଜେ ଖୋଜି ନେବା 'ରେକମେଣ୍ଡେସନ',
ଦେଖ ଲାଗି ଶିକ୍ଷକର ମୋର ଦଶଟଙ୍କା ବେତନ ।



କବି ହେବ ଲେଖିବ ନାହିଁ ନଭେଲ, ନାଟକ,
ଡ଼େରିବ ନାହିଁ କେବେ ଭାଇ ! ସାହିତ୍ୟପାଠକ !
ଲେଖ ବସି 'କେଳାସୁଅଙ୍ଗ' 'ଗାଁ କନ୍ଦେଇ ଘୋଡ଼ୀ,'
ଏକାଦିନକେ ହଜାର କପି ଯିବ କାହିଁ ଉଡ଼ି ।
ମୋ କଥାଟି ନ ମାନିଲେ କବିପଣ ଯିବ,
କଲମ କାମୁଡ଼ି ପେଟ ଭୋକରେ ମରିବ ।

ଦେହ ଥିଲେ ହିନା ବାବୁ କବ ହେବ ପଛେ,
ଭୁବଭଙ୍ଗୀ ଗାଧୋଇ ଯିବ ମଳବନ୍ଧ ମିଛେ ।
ଥଟ୍ଟା ପଛେ ମଣ ମୋତେ ଦେଖି ଆସ ଯାଇ,
କେତେ ଖଣ୍ଡ ସାହିତ୍ୟ ପଢ଼େ ମୋ ଓଡ଼ିଆଭାଇ ?
ଧନ ନାହିଁ ଯାର ହେଲେ ଲେମ୍ ଏକ୍ସକ୍ଲୁୟଜ୍ ତାର,
ଲକ୍ଷପତି ଓଡ଼ିଆର ଦେଖ କାରବାର ।
ଖବରକାଗଜ ଆସେ ହୋଇ ଗଣ୍ଡା ଗୋଛ,
ଅଖୋଲା ପଡ଼ିଛି ନୂଏ ସେ ଲନ୍‌ଡନ୍ ପୋଷ୍ଟ ।
ଏ କଥାଟା ମିଛ ଯେବେ କହିବ ମୋହର,
କେ ନ ଜାଣେ ସତ କଥାଟା, କହି ମୁଁ ନା'ଗର ।



ମୋ ଚରିତ୍ର କୈଫିୟତ୍ ମୁଁ ଜନେ ଦେଏଁ ଶୁଣ,
ଗାଉଥାଏ ଗୁଣ ବସି ଖାଏ ଯାର ନୁଣ ।
ଲୋକେ ମୋତେ କହୁଥାନ୍ତି ବଡ଼ ଧପାଦାର,
ଯେ ଯେପର ତା' ସଙ୍ଗେ ମୋ ସେଇ ବ୍ୟବହାର ।
ଯେ ମୋତେ ଯହିଁକି କହେ ଶଠ ପ୍ରବଞ୍ଚକ,
ଭାବବାକୁ କହେ ତାକୁ ଅଜ୍ଞ ମୁଁ ଏତକ ।
ଜନେ ଯେ ବ୍ୟବହାରଟା ମୋ ପ୍ରତି କରନ୍ତି,
ଉତର ପେଟ ତ ଆଉ କିଛି ନ ରଖନ୍ତି !
କାନେ ଶୁଣେ ହୁଣ୍ଡା ପର କରେ ଜନ କାମ,
ଏଥିଲାଗି ଚଡ଼ ମୋତେ ମୋ କରମ ବାମ ।

ପରଶିଙ୍କି ଦେଖି ନ ପାରୁ ଛୁଏଁ ଜଳ ମରି,
କାମୁଡ଼ ଅଙ୍ଗକୁ ରାଗେ ଯେସନ ବାନର ।
ଖେଣ୍ଟେ, ଖେଣ୍ଟେ ଜାଣେଁ ସବୁ କହେ ଅନ୍ୟ ମତ,
ନ କଲେ ଏକେକ ଭଲ ଚଳିବ କେମନ୍ତ ?
ତମର ତମେ ଦଳ ବାନ୍ଧ ମୁଁ ତ ଏକା ଏକା,
ତମକୁ ସବୁ ପଦାରେ ରଖି ଖେଳେ ପଞ୍ଝା ଛକା ।
ତୁମେ ତୁମର ତୁଗୁଲି କର ମଦା ମଉଜରେ,
ମୋ କାନକୁ ପଥର ଭାଇ ! ଏ ମନଷ ଜନମରେ ?
କରୁଥାଅ ତୁମେ ସବୁ ଫୁଙ୍କି ଦିଏଁ 'ଶଙ୍ଖ',
କି କରିବ ଭାଇ ଯେବେ ଭାଗ୍ୟଟି ସଲଖ ।
ମୋର ଲାଗି ତୁମ ତଣ୍ଟି ନ ଗଲାଇ ଗୁଣ୍ଡା,
ଦେଖେଁ, ହସେ, ଭାବ ଜଥ ! କାଏ ଭଲ କାଏ ଗୁଣ୍ଡା ।



ଜଣେ ରଜା ମରିଗଲେ ଯେ, ଦେଖିଛି ମୁଁ ଆଜି,
ଡ଼ରେ କାଆଁ ଛୁଇଁଲା ନାହିଁ, ହେଲା ନାହିଁ ରାଜି ।
ବହୁ କଷ୍ଟରେ ଘିଅ ଢାଳିଲୁ ପୋଡିଲା ଶ୍ରୀଅଙ୍ଗ,
ପୋଡ଼ା ପାଉଁଶ 'ସୁନା' ହେଲା ଦେଖା ଧଳଧା ରଙ୍ଗ ।
ଯାଇରୁ ଆମର ବନ୍ଧୁଆ ମଲା ବେଶ୍ ପୋଡିଗଲା,
ହାଡ଼, ମୁଣ୍ଡ, ଗଣ୍ଠି ତା'ର ଧୂଆଁ ପାଉଁଶ ହେଲା ।
ରଜା ପ୍ରଜା ମଲେ ମଧ ଫରକ ଥାଏ ଏତେ,
ଭୁଲୁଲୋକ ଏ କଥା ମୁଁ ଜାଣିବ କେମନ୍ତେ ?



ଚଢ଼ିଗଲ କି ଏତେ କଥା କହିଲି ମୁଁ ବୋଲି,
ଗରମ ହେଲେ ଦେବ ପଛେ ଚନ୍ଦନ ମୁଁ ଗୋଳି ।
ସଲାମ ଠୁଙ୍କି ମୁଁ ନଇଁ ବଦାମ୍ବ ଏଥର,
ପଞ୍ଚକୁହାଙ୍କ ଚରଣେ ମୋ କୋଟି ନମସ୍କାର ।
ହନ ତ ମୋର ସରୁ ନାହି ଏଇଠା କଲି କାର,
ବେଳେ ବେଳେ ସଭାରେ ଆସି ହେବ ମୁଁ ହାଜର ।
ଗୁଣ ଗ୍ରାମ ଗାଉଥିବ ଏହା ତ ମୋର ସାର,
ଝପକ ନବାବ୍ ହେବ, ଗୃପଡ଼ା ପଛେ ମାର ।
ଧୂଳିଅ ଜନ୍ଦା ଥାଇ ବୋଲେ ମୁଁ ଭୁଇଁ ତଳେ ତଳେ ଥିବ,
ବଗଡ଼, ବାଗଡ଼ ଦେଖିଲେ ମୋର ଅଭ୍ୟାସ ଜଗିବ ।
ମୁଣ୍ଡରେ ମୋର୍ ଗୋଇଠା ଦେଲେ ସେଠେ କାମୁଡ଼ିବ,
ଆପେ ନ ମଲେ କି କେବେ ପ୍ରକୃତି ଛାଡ଼ିବ ?

ସମ୍ପୂର୍ଣ୍ଣ ।



Printed by V. Kar The Utkal Sahitya Press, Cuttack.

# ବିଜ୍ଞାପ

ଶ୍ରୀ କାଳୀଚରଣ ପଟ୍ଟନାୟକଙ୍କ-
ପ୍ରଣୀତ—

୧ । କଳାହାଣ୍ଡିଆ ମେଘ । (ସୁନ୍ଦର ଶିଶୁପାଠ୍ୟ କବିତା) ୮ ୦ /୬

୨ । କରଣ ତାଳ ।
( ନବୀନ ରାଗ ରାଗିଣୀ ସମ୍ବଳିତ
ଗଳ୍ପର ଭାବପୂର୍ଣ୍ଣ ସଙ୍ଗୀତ ଗୁଚ୍ଛ )— ୬ ୦ /୬

୩ । ବାୟୁାଧନଙ୍କୁ ( ୨ୟ ମୁଦ୍ରଣ )
(ଉପଦେଶାତ୍ମକ ଶିଶୁପାଠ୍ୟ କବିତାବଳୀ ।
ପାଠକଲେ ଆବାଳବୃଦ୍ଧବନିତା ମୁଗ୍ଧହେବେ ୬ ୦ /

୪-ଧ୍ରୁବ ନାଟକ
(ସହଜରେ ଅଭିନୀତ ହୋଇପାରିବ
ଭାଷା, ଭାବ, ସଙ୍ଗୀତ—ସମସ୍ତହିଁ
ମନୋହର । ଉତ୍କଳରେ ନୂତନ ପୁସ୍ତକ ।
ପଢନ୍ତୁ, ମୁଗ୍ଧ ହେଉନ୍ତୁ । ) ୬ ୦ ।/

ପ୍ରାପ୍ତିସ୍ଥାନ ଃ—
ପ୍ରିଣ୍ଟିଂ କୋମ୍ପାନୀ-ଦରଘାବଜାର କଟକ
ଚନ୍ଦ୍ରୋଦୟ ପ୍ରେସ୍, ବାଲୁବଜାର ପୋଃ ଅଃ ଚାନ୍ଦନୀଚୌକ କଟକ
ଅରୁଣୋଦୟ ପ୍ରେସ୍-ବାଲୁବଜାର „
ଦାଶପ୍ରେସ୍ „ „
ସୁଧାକୃଷ୍ଣ ବସୁ । ମାଣିକଘୋଷ ବଜାର „
ଟ୍ରେଡିଂ କୋମ୍ପାନୀ -ବାଲୁବଜାର „
ଉତ୍କଳ ନାସନାଲ ଷ୍ଟୋର, ଚଉଧୁରୀବଜାର କଟକ ।

—*O*—

